## କାହା ପାଇଁ ଲେଖିବି କବିତା—୧

କି ଲାଗି ଲେଖିବି    କି ଲେଖି ରଖିବି
  କାହିଁ ମୋ ପଢ଼ିବା ଜନ?
ସେ ତ ଗଲା ଦୂରେ    ମନ ଖାଲି ଝୁରେ
  ଦେଖିବାକୁ ସେ ଆନନ।।  ୧।।

ଯେବେ ବିଦା ହେଲା    କାନ୍ଦି କହି ଗଲା
  ମୋ ଲାଗି ଲେଖିବ ଗୀତା
କେବେ ହେବ ଦେଖା    ପଢ଼ିବ ମୋ ଲେଖା,
  କିଛି ସେ କହିଲାନି ତା।  ୨।।

ଲୁହ ଭିଜା ମୁଖେ    କହି ଗଲା ଦୁଃଖେ --
  ଆଜି ହେଉ ଅବା କାଲି
ଗୋଟି ଗୋଟି ଗୀତ    ଶରଧା ସହିତ
  ପଢ଼ିବି ଆସିଲେ ଚାଲି।।  ୩।।

ତା ବଚନ ମାନି    ଧରେ ମୁଁ ଲେଖନୀ,
  ଆଗକୁ ଚାଲେନା ହାତ।
ଖିଆ ପିଆ ଢିଲା    ମନା କରି ଗଲା,
  ପାଟିକୁ ଯାଏନା ଭାତ।।  ୪।।

ତା ପାଇଁ ଲେଖୁଛି    ଗୀତଟିଏ, ବାଛି
  ଆଗକୁ ପାଉନି ଭାଷା।
ଏ ଗୀତ ନ ସରୁ    କେବେ ବି ନମରୁ
  ତା ଲାଗି ଲେଖିବା ଆଶା।।  ୫।।

ଲଲାଟେନ୍ଦୁ କବି    ୨୦୧୭୦୯୧୯୧୨୦୦

## କାହା ପାଇଁ ଲେଖିବି କବିତା –୨

ସେ ଗୀତ ଲେଖିବି, କେବେ ମୁଁ ସାରିବି
ଆରମ୍ଭ ପାରୁନି କରି,
କିଏ ଏଠି ଆସି ମୋ ପାଖେ ଆଶ୍ୱାସି
ଲେଖି ଦେବ ହାତ ଧରି ? -୬॥

ବିଦା ହେବା ବେଳେ ଭରା ଅଶ୍ରୁ ଜଳେ
କହି ସେ ତ ଗଲା ଚାଲି,
ନେବି ନାହିଁ କିଛି, ଏତିକି କହୁଛି –
କବିତା ଲେଖିବ ଖାଲି || -୭॥

ଛୋଟିଆ କଥାଟେ ରଖିଛି ଉଚ୍ଛାଟେ,
ଭାଳେ ବୃଥା ବାର ବାର
ହାତେ କରି ସଜ ଧରିଛି କାଗଜ
ପଡୁନି କଲମ ଗାର || -୮॥

ମାଡିଲାଣି ଲାଜ, ଯଦି ଆସେ ଆଜ
ଦେଖାଇବି କି ବଦନ;
ଏତେ ବେଳ ଯାଏ ଲେଖିନି ଧାଡିଏ
ଇଏ କେଉଁ କବିପଣ || -୯॥

ଦିନ ଯାଏ ନଇଁ ଅନ୍ଧାର ଘନେଇ
ନିଶବଦ ହେଇ ଗଲା,
ପାରୁ ନାହିଁ ଲେଖି: ହେଲେ ଦେଖା ଦେଖି
କି ତାକୁ କହିବି ଭଲା || -୧୦॥

ଲଲାଟେନ୍ଦୁ କବି ୨୦୧୭୦୯୨୦-୦୦୧୨

## କାହା ପାଇଁ ଲେଖିବି କବିତା -୩

ସହଳ ଆସିବ ବାହୁଡି
ବୋଲି ବାନ୍ଧିଛି ଆଶା;
ଦେଖିବି ଗବାକ୍ଷ-ଲଉଡି
ଜାଗି ଉଠେ ପିପାସା॥୧୧

ଛୋଟିଆ ଦୀପଟେ ଚଉରା
ପାରେ ରଖିଛି ଜାଳି;
ଦେଖିଲେ ତା ରୂପ ପସରା
ଯିବି କଲମ ଚାଳି |୧୨

ଗୋଟି ଗୋଟି ଯେବେ ଦୂରେଇ
ଯିବେ ଆପଣା ଜନ
କବିତା ଲେଖି କେ ବୁଝାଇ
ନେବ ଅବୁଝା ମନ । ୧୩

ଲେଖିବି ତା ଲାଗି ପଦଟେ,
ରାତି ରହେ ମୁଁ ଚାହିଁ;
କପଟେ ହେଉ କି ଅଝଟେ,
ସେ ତ ଆସିଲା ନାହିଁ ୧୪

ପାରିବ କି ପୋଛି ମରମ
ବ୍ୟଥା କଲମ କୁହ ?
କି ସରମ ? କେବେ କଲମ-
ରେଖା ମଲମ ନୁହଁ |୧୫

ଲଲାଟେନ୍ଦୁ କବି 2017091-0560 

## କାହାପାଇଁଲେଖିବିକବିତା -୪

ଗଲା ଏତେ ଦିନ, ଜଳ ଛାଡି ମୀନ
ଯେସନେ ରହିଲା ମନ;
ଦେଖା ଦେଇ ଥରେ କଥା ହେଲା ପରେ
କାହିଁ ହଜି ଗଲା ଧନ ॥ -୧୬॥

କହି ଗଲା ଚାଲି ଏବେଠାରୁ ଖାଲି
ଥରେ ଅଧେ ଆସୁଥିବ;
ପଢି ମୋର ଗୀତ ହେବ ଅନ୍ତର୍ହିତ
ପଢା ଯେବେ ସରି ଯିବ ॥-୧୭॥

ଲେଖିଲେ ଅଳପ ନ କରି ଗଳପ
ପଢି ତାକୁ ଯିବ ଚାଲି;
ଲେଖା ଥିଲେ ବେଶି ତା ମନ ନିବେଶି
ପଢି ସେ ଗପିବ ଖାଲି ॥-୧୮॥

କହିଛି, "ଲେଖୁଥା ଦରଦୀ କବିତା
ବ୍ୟଳୀକ-ବୋଳିତା କଥା;
ଗ୍ରଥିତ ଜୀବନ ପ୍ରମଥିତ ମନ
ନିରାଦର-ବିଧୁରତା ॥-୧୯॥

ଆଚରି ଅଳସ ମୋ ଲାଗି ସରସ
ନ ଲେଖିବ ଯେବେ ଗୀତ;
ଲୁହ ଧାର ଖାଲି ଦେବି ସିନା ଢାଳି
ଆଉ ମୁଁ ଆସିବିନି ତ ॥"-୨୦॥

ଦିଅ ମୋତେ ମାତଃ ମତି ଅପ୍ରମିତ
ଲେଖିବାକୁ ରାତି ସାରା;

ସେ ଅବୋଲକରା ମୋ ଦୁଃଖପାସୋରା
ଢାଳି ଚାଲୁ ପ୍ରୀତି-ଧାରା ॥-୨୧॥

ଲଲାଟେନ୍ଦୁ କବି ୨୦୧୭୦୯୨୨୦୧୨୬

## କାହାପାଇଁଲେଖିବିକବିତା – ୫

କଥା ତାର ଭାଳି ଭାଳି
ହାତ ନ ପାରିଲି ଚାଳି
କହିଲା ସେ ଛାଡିଲ କି ଲେଖା ?
ଲେଖା -- ଛାଡନା ମୁଁ କରୁଥିବି ଦେଖା ॥୨୨

ତୁମ ଲେଖା ଦେଖି ଦେଖି
ଦି' ପଦ ଦେଇଛି ଲେଖି;
ନ ଲେଖିଲେ ତୁମେ ଏବେ ଆଉ,
ଆଗେ ଲିଖନ ମୋ ସପନରେ ଥାଉ ॥ ୨୩

ତୁମେ ଯେବେ ଚାହଁ ସତେ
ଲେଖିବି ମୁଁ ତୁମ ସାଥେ
ରାଣ ମୋର ଲେଖ ତୁମେ ପୁଣି ||
ମୁଁ ବି -- ପାରିଲେ ଲେଖିବି ତାକୁ ଶୁଣି ॥ ୨୪

ଖୋଲିବ ସେ ରାଣ ବୋଲି
କାଗଜ ଧରନ୍ତେ ଖୋଲି
ଧୀରେ ଧୀରେ ଆସୁଛି ଭାବନା;
ଆସୁ, -- କରିବି ମୋ ଲେଖନୀ ଚାଳନା ॥୨୫

ଏପରି ଯିଏ ପାଇଛି
ସଶ୍ରଦ୍ଧ ପାଠକ କିଛି
ତେଜିବ କି ପ୍ରଦୀପ-ସଳିତା ?
ରାତି -- ରାତି ପୁଣି ଲେଖିବି କବିତା ॥୨୬

ଲଲାଟେନ୍ଦୁ କବି ୨୦୧୭୦୯୨୪୧୨୫୩

## କାହା ପାଇଁ ଲେଖିବି କବିତା – ୬

ସାଥୀ କେତେ ପ୍ରଶ୍ନ କଲେ
ପ୍ରୀତି ମିଶା କୁତୁହଳେ
ମୁହି ଁ -- କା ଲାଗି ଲେଖୁଛି ମଥା କଷି ଗୋ ?
ତାଙ୍କୁ -- କହେ, ଭଲ ଥିଲେ ପଢ ବସି ଗୋ ॥୨୭

ସଭିଏଁ ଆପଣା ଜନ
କାହାକୁ ଅଛି ବାରଣ ?
ପଢ -- ଯିଏ ଚାହଁ ପଢିବ ମୋ ଗୀତ ଗୋ
ମୁଁ ତ -- ଲେଖୁଛି ନିଦାଘ ଧାରା ଶୀତ ଗୋ ॥୨୮

ବୋଲିଛନ୍ତି କାଳେ କାଳେ
ଗିରି ବନ ତୋଟା ମାଳେ
ପଲ୍ଲୀ ନଗର ଡଗର ସଭା ସ୍ଥଳେ ଗୋ
ଭିନ୍ନ ଭିନ୍ନ ରୂପେ କବିତା ସକଳେ ଗୋ ॥୨୯

କି ଗୀତ ଲେଖିଲା କିଏ,
ଯାହାକୁ ବାଛିଲା ଯିଏ
ସେ ତ ଆନନ୍ଦେ ଗାଇଲା ସେ ସଂଗୀତ ଗୋ ;
ସୁଖୀ ଦୁଃଖୀ କଲେ ଚିତ୍ତ ବିମୋହିତ ଗୋ ॥୩୦

ଅର୍ଭ ବୋଲେ ଚାଟଶାଳେ
କୁଟୁମ୍ବିନୀ ପାକଶାଳେ
ବୋଲେ ଦେବାଳୟେ ଶିବାଳୟେ ଦ୍ୱିଜ ଗୋ
ଜାଣ କବିତା ଏଭଳି ଗୋଟେ ଚିଜ ଗୋ ॥୩୧

ଜାତି ନାହି ଁ ପତି ନାହି ଁ

କବିତା ସଭିଙ୍କ ପାଇଁ
ବିଶ୍ୱ ସାରା ପ୍ରତି ପରାଣେ କବିତା ଗୋ
ବୃଦ୍ଧ ଶିଶୁ ଯୁବା ଯୋଷିତା ବନିତା ଗୋ ।।୩୨

ଲେଖୁଛି ସଭିଙ୍କ ପାଇଁ
ଭଲ ନ ଲାଗିଲେ ଭାଇ
କହ କି ଭାବେ କରିବି ସଂଶୋଧନ ଗୋ;
ଆଉ କି ଲେଖି ତୋଷିବି ତୁମ ମନ ଗୋ ।।୩୩

ଲଲାଟେନ୍ଦୁକବି ୨୦୧୭୦୯୨୫୨୩୫୨*

## କାହା ପାଇଁ ଲେଖିବି କବିତା – ୭

ସେଇ ଫୁଲ ତୋଳି ଆଣିବ କେ ବୋଲି
ଲେଖା ଛାଡି ପାରୁ ନାହିଁ,
କେମିତିକା ମାଳୀ- କାମ କରେ ବାଳୀ,
ଦିନ ବିତେ ତାକୁ ଚାହିଁ ॥ ୩୪

ସ୍ୱଜନ -- ପଡିଶା ନୁହଁ -- ସେ ପଇସା
ଛୁଇଁବନି ମୋର କହେ;
ଫୁଲ ଦେଇ ନିତି ନୂଆ ନୂଆ ଗୀତି
ଶୁଣିବାକୁ ବସି ରହେ ॥ ୩୫

ଥକିଲେ ମୋ ହାତ କରି ପ୍ରଣିପାତ
ପ୍ରଭୁଙ୍କୁ ପକାଏ ଡକା --
ଏ କି ବା ଅଭୟ? ଏଡେ ନିରିଦୟ,
ଲେଖୁ ଲେଖୁ କର ଥକା ॥ ୩୬

ଅନାବିଳ ମତି ଅମୃତ ଲପଟି
ସଞ୍ଚାରେ ଛନ୍ଦ ଝଙ୍କାର !!
ଭରେ ପ୍ରଗଲ୍ଭତା, ସରେ ମୋ କବିତା,
ଅଦୃଶ୍ୟର ଚମତ୍କାର ॥ ୩୭

ଡରି ଥରେ ଥରେ ଆସି ମୋ ପାଖରେ
ଧୀରେ ଧୀରେ କହେ ବାଳା;
ପୂଜା କର ନାହିଁ ହେଲେ ବି କି ପାଇଁ
ନିତି ନିତି ନିଅ ମାଳା ? ॥ ୩୮

ତୁମ ଗୀତ ପଢ଼ି ନୟନୁ ମୋ ଝରି
ଲୁହ ଯାଏ ଭରି ଦେଖ;
ବାଞ୍ଛିତ ଚେତସେ ବିନା ଚକ୍ଷୁ ରସେ
କେମିତି କବିତା ଲେଖ ? ॥ ୩୯

ନିର୍ମଳା ବାଳିକା କୋମଳା କଳିକା
କି ତାକୁ ଦେବି ଉତ୍ତର ?
ହାତେ ହାତ ଧରି କହେ – ଟିକି ପରୀ,
ଫେରି ଯା ଫେରି ଯା ଘର ॥ ୪୦

ଲଲାଟେନ୍ଦୁ କବି ୨୦୧୭୦୯୨୭୧୫୪୫

## କାହା ପାଇଁ ଲେଖିବି କବିତା-୮

ଲେଖୁ ଲେଖୁ ନିଦ ଅଳସେ
ଥରେ ପଡିଲି ଶୋଇ;
ମାଳୀ ଝିଅ ଥିଲା ମୋ ପାଶେ
ଜଗି ମୋ ଖାତା ବହି ||-୪୧

ବାଜି ଗଲା ହାତ ମୋହର,
ଗଲା ଖାତାଟା ପଡି;
ଭିତରେ ସାଇତା ପତର
ଗୋଟେ ପଡିଲା ଝଡି ||-୪୨
ତାକୁ ଧରି ମାଳୀ-କୁଆଁରୀ
ସସସବସି ରହିଲା ଚାହିଁ;
ଉଠିବାରେ ମୋତେ ପଚାରେ,
“କିଏ ଏ ଝିଅ ? କାହିଁ ||-୪୩

କି ଭାବେ ଏହାକୁ ଜାଣିଲ ?
ଏ ମୋ ପୁରୁଣା ସାଥୀ;
ବହୁ ଦିନୁ ଦେଖି ନାହିଁ ମୁଁ,
ଖୋଜେ ବିକଳେ ଅତି ||-୪୪

ଟାଳି ନ ପାରି ତା ବଚନ
ସବୁ କହି ମୁଁ ଗଲି --
"ଏ ନୁହେଁ କେହି ମୋ ନିଜର,
ପୁଣି ଝିଅଠୁ ବଳି ||-୪୫

ସେ ଫୁଲକୁମାରୀ ବାଳିକା
ପାଇଁ ମୋ ଗୀତ ଲେଖା;
ଏବେ ଡାକି ଆଣି ପାରିବି
ନାହିଁ, ହେବାକୁ ଦେଖା ||-୪୬

ବିଦା ବେଳେ କଥା ନେଇଛି
ସିଏ ନିୟମ କରି --
ନିତି ମୁଁ ଲେଖିବି କବିତା-
ଟିଏ -- ତା ହାକୁ ସ୍ମରି ||-୪୭

ଲେଖିବି ଦରଦୀ ସଂଗୀତ
ଟୋପେ ନ ଢାଳି ଲୁହ,
ସେ ଲାଗି ଆସେନା ଲୋତକ,
ଚାପି ରଖେ ମୋ କୋହ ||-୪୮

କହିଛି ଯେ ଦିନ କବିତା
ଲେଖି ପାରିବି ନାହିଁ;
ନ ଦେବି ଫୁଲ କି ପାଖୁଡା-
ଟିଏ ସେ ଦିନ ପାଇଁ ||-୪୯

ତା ଲାଗି ରଖୁଛି ତୋ ପାଶୁ
ମାଳା ନିତି ଗୋଟିଏ;
ଦିନ କେତେ ମୋର ଯାଉ ରେ
ବାଳା, କାହାର କିଏ ? ||-୫୦

ନାହିଁ ସେହି ଅଭିମାନିନୀ
ତୋର ପୁରୁଣା ମିତ;
ଯା ଲାଗି ଲେଖେ ମୁଁ ନ ମାନି
ଖରା ବରଷା ଶୀତ ||-୫ ୧

ତୋ ପରି କଅଁଳ ତା ମୁହଁ,
ହାତ, ତା ଆଖି, ପତା;
ଛାଡି ସେ ଯାଇଛି ମୋ ପାଶେ
କୁଡ କୁଡ ମମତା ||-୫ ୨

ମାଗିଛି ଫୁଲ ସେ ବରଷେ,
ଆଉ ମାସଟେ ବାକି;
ଦେଉ ଥିବି ଫୁଲ, ହରଷେ
ସିଏ ଥିବ ଚାହିଁକି " ||- ୫୩

ଲଲାଟେନ୍ଦୁ କବି ୨୦୧୭୦୯୨୭୧୫୪୫

ସମାପ୍ତ